# ଆମରି ଦେଶ ଓ ଆମ ସମାଜ



ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା

# ଆମରି ଦେଶ ଓ ଆମ ସମାଜ

*ଡାକ୍ତର ମଦନ ମୋହନ ପ୍ରଧାନ*

ଭାରତ ଜ୍ଞାନ ବିଜ୍ଞାନ ସମିତି,ଓଡ଼ିଶା

ଭୁବନେଶ୍ୱର

# ଆମରି ଦେଶ ଓ ଆମ ସମାଜ


| | |
|---|---|
| ଲେଖକ | : ଡଃ ମଦନ ମୋହନ ପ୍ରଧାନ |
| ପ୍ରକାଶକ | : ଭାରତ ଜ୍ଞାନ ବିଜ୍ଞାନ ସମିତି,ଓଡ଼ିଶା<br>ସି/୨,ହାଉସିଂ ବୋର୍ଡ୍ କଲୋନୀ<br>ବରମୁଣ୍ଡା<br>ଭୁବନେଶ୍ୱର -୭୫୧୦୦୩ |
| ଅଳଂକରଣ | : ଅକ୍ଷୟ କୁମାର ବେହେରା |
| ପ୍ରଥମ ସଂସ୍କରଣ | : ୨୦୦୭ |
| ମୁଦ୍ରଣ | : ଜୟ ଭାରତୀ ୟୁନିଟ୍ |
| ମୂଲ୍ୟ | : ୧୮.୦୦ |

Amari Desh O Ama Samaj

| | |
|---|---|
| Writer | : Dr.Madan Mohan Pradhan |
| Published | :Bharat Gyan Vigyan Samiti,Orissa<br>C/2 HIG, Housing Board<br>Colony,Baramunda<br>Bhubaneswar-751003 |
| Ist Edition | : 2007 |
| illustration | : Akashay kumar Behera |
| Printed at | : Jay Bharati Unit |
| Price | : 18.00 |

# ଆମରି ଦେଶ ଓ ଆମ ସମାଜ

ଆମ ଦେଶ ଭାରତ ପୃଥିବୀର ଦ୍ୱିତୀୟ ବୃହତ୍ତମ ଦେଶ । ଏହାର ଲୋକ ସଂଖ୍ୟା ଶହେ କୋଟିରୁ ଅଧିକ । ନାନା ଧର୍ମ ଓ ଭାଷାଭାଷୀର ଲୋକ ଭାରତୀୟ ବୋଲି ପରିଚୟ ଦିଅନ୍ତି । ଏହାର ଅତୀତ ଗୌରବମୟ । ଏହାର ଉନ୍ନତ ପରମ୍ପରା ଯୋଗୁଁ ଏ ଦେଶ ତାର ସ୍ୱାତନ୍ତ୍ର୍ୟ ବଜାୟ ରଖିଛି ।

ଅନେକ ଦିନ ଧରି ଆମ ଦେଶ ଇଂରେଜମାନଙ୍କ ଅଧୀନରେ ରହିଥିଲା । ହଜାର ହଜାର ଦେଶ ଭକ୍ତଙ୍କ ନିଷ୍ଠାପର ସଂଗ୍ରାମ ବଳରେ ଆମ ଦେଶ ଇଂରେଜ ସରକାରଙ୍କଠାରୁ ମୁକ୍ତି ଲାଭ କଲା । ଅନେକ ଆଶା ଓ ଆକାଂକ୍ଷା ନେଇ ଆମେ ସ୍ୱାଧୀନତା ପରେ ରାମରାଜ୍ୟ ସ୍ଥାପନାର ସ୍ୱପ୍ନ ଦେଖିଥିଲୁ । ମାତ୍ର ଏ ସବୁ ସ୍ୱପ୍ନ ସ୍ୱପ୍ନରେ ରହିଗଲା । ଆମେ ଦେଶ ବର୍ତ୍ତମାନ ବହୁ ବିପଦ ଦେଇ ଗତିକରୁଛି । ଜଣାପଡୁଛି ସତେ ଯେପରି ଆମେ ପୁଣି ପରାଧିନ ହୋଇଯିବା । ଦେଶ ଆଉ ଥରେ ଭାଗ ଭାଗ ହୋଇଯିବ । କୌଣସିମତେ ଆମକୁ ଏହି ବିପଦରୁ ଦେଶକୁ ରକ୍ଷା କରିବାକୁ ପଡ଼ିବ ।

ନିଜକୁ ପ୍ରଶ୍ନ ପଚାରିବା, ଆମେ କଣ ସୁଖରେ ଅଛୁ ? ସମାଜରେ ଆମ ଘର ଲୋକେ, ବନ୍ଧୁବାନ୍ଧବ, ସାଙ୍ଗସାଥୀମାନେ କଣ ଖୁସିରେ ଅଛନ୍ତି ? ଯାହା ସବୁ ଚାଲିଛି, ସେ ବିଷୟରେ ଆମେ କ'ଣ ସନ୍ତୁଷ୍ଟ ? ସତରେ କହିବାକୁ ଗଲେ, କେହି ବି ଖୁସିରେ ନାହାନ୍ତି, କି କେହି ବି ସନ୍ତୁଷ୍ଟ ନୁହନ୍ତି । ଆମେ ଯାହା ପାଇବାକୁ ଇଚ୍ଛା କରୁଛୁ, ସେସବୁ ମିଳୁନି । ଭବିଷ୍ୟତରେ ମିଳିବ ବୋଲି ଆଶା ନାହିଁ । ଆମେ ଆକାଶ କଇଁଆ କି

ଚିଲିକା ମାଛ ମାଗୁନୁ । ମାଂସ ପଲଉ ଖାଇବା ପାଇଁ ମଧ୍ୟ ଆମର ଲାଳସା ନାହିଁ । ମୁଠାଏ ଭାତ କିମ୍ବା ଦି ପଟ ରୋଟି ଆଉ ଡ଼ାଲି ଟିକିଏ ଆମର ଲୋଡ଼ା । ବହଳିଆ ଡ଼ାଲି କଥା ଛାଡ଼, ପାଣିଆ ଡ଼ାଲି ଟିକିଏ ମିଳିଲେ ବି ଯଥେଷ୍ଟ । ଆମ ପାଇଁ ଏତିକି ମିଳୁନି । ମାଘ ମାସର ହାଡ଼ଭଙ୍ଗା ଶୀତ କାକରରେ ଘୋଡ଼ାଇ ହେବା ପାଇଁ ଚାଦର ଖଣ୍ଡିଏ ନାହିଁ । ଆମ ଭଳି ଏ ଦେଶର କୋଟି କୋଟି ଭାଇଭଉଣୀ ଏଇ ଅବସ୍ଥାରେ ଅଛନ୍ତି । ମୁଣ୍ଡ ଗୁଞ୍ଜିବା ପାଇଁ ଅନେକଙ୍କର ଚାଳଘର ଖଣ୍ଡିଏ ନାହିଁ । ଘୁଷୁରି ଗୁହାଳ ପରି ଆମ ଘରଦ୍ୱାର ।

ଗାଁ ମୁଣ୍ଡରେ ଗୋରାଚାନ୍ଦ ବାବୁଙ୍କର କୋଠାଘରଟିଏ ଅଛି । ସହର ବଜାରରେ ରାଜପ୍ରସାଦ ଭଳି ଏମିତି ଅନେକ କୋଠାମାନ ଅଛି । ଏଭଳି ବଡ଼ ବଡ଼ କୋଠାମାନ ଆମର ଲୋଡ଼ା ନାହିଁ । ସାରାଜୀବନ ତପସ୍ୟା କଲେ ବି ଏଭଳି ଘର ଆମକୁ ମିଳିପାରିବ ନାହିଁ । ଆମ ପାଇଁ ଛୋଟିଆ ଚାଳଘର ଖଣ୍ଡିଏ ଦରକାର । ଏହି ଘରଟିକୁ ଆମେ ଆମର ବୋଲି କହିପାରିବୁ, ଆଉ ଭଲ ପାଇପାରିବୁ । ଆମ ଘରଟି ଚକ୍‌ଚକିଆ ନ ହେଲେ ବି ସଫାସୁତୁରା ହୋଇଥିବ ।

ଘର ଚାରିପାଖ ନିର୍ମଳ ଥିବ । ଘର ସାଙ୍ଗକୁ ପିଲାପିଲି ସୁସ୍ଥରେ ରହିବା ଆବଶ୍ୟକ । ଏଥିପାଇଁ ଆମେ ବେଶୀ କିଛି ଦରକାର କରୁନୁ । ଖାଇବାକୁ ମୁଠାଏ ଦାନା, ପିନ୍ଧିବାକୁ କନା ଆଉ ମୁଣ୍ଡ ଗୁଞ୍ଜିବା ପାଇଁ ଘର ଖଣ୍ଡିଏ ଲୋଡ଼ା । ବର୍ତ୍ତମାନ ଏ ସବୁ ଆମ ପାଇଁ ଦୁର୍ଲ୍ଲଭ । ଆସନ୍ତା କାଲି ବି ଏସବୁ ଆମ ପାଇଁ ଦୁର୍ଲ୍ଲଭ ରହିଥିବ ବୋଲି ଆମର ବିଶ୍ୱାସ । କହିବାକୁ ଗଲେ, ଆମେ କେବଳ ଆଜି ପାଇଁ ବଞ୍ଚିଛୁ । ଆମେ



ଖୁସି ଯେ ଗତ କାଲି ଚାଲିଯାଇଛି । ଆସନ୍ତା କାଲି କଥା ଭାବିଲେ ଡ଼ର ମାଡୁଛି !

ଆମ ପିଲାମାନେ ଆମର ପ୍ରିୟ । ସେମାନଙ୍କୁ ଭଲପାଇବା ଓ ଗେଲ କରିବା ଛଡ଼ା ଆମେ ଆଉ କଅଣ ଦେଇ ପାରୁଛୁ ? ଭୋକ ଉପାସରେ

ସେମାନଙ୍କ ପେଟ ଜଳିଯାଉଛି । ପିନ୍ଧିବା ଜାମା ସବୁ ଫାଟି ଗଲାଣି । ତାଳି ପକାଇ ଚଳେଇ ନେବା କଥା । ସେମାନେ ସ୍କୁଲ୍‌କୁ ଯାଉନାହାନ୍ତି । ସେମାନଙ୍କୁ ସ୍କୁଲକୁ ପଠାଇବା ପାଇଁ ଆମ ହାତରେ ଧନ ନାହିଁ ।

ବଡ଼ିଆ ବଡ଼ିଆ ସ୍କୁଲ୍ ସବୁ ଅଛି । ଭାଗ୍ୟବାନ ପିଲାମାନେ ସେଠାରେ ପଢୁଛନ୍ତି । ସ୍କୁଲ୍ ଦରମା, ସ୍କୁଲ୍ ପୋଷାକପତ୍ର, ବହିପତ୍ର ଆଦି ଯୋଗାଇ ଦେବା ପାଇଁ ସେମାନଙ୍କର ଘରେ ଅଭାବ ନାହିଁ । ମାଗଣାରେ ପଢ଼ାଇବା ପାଇଁ ବି ଆମ ଗାଁମାନଙ୍କରେ ସରକାରୀ ସ୍କୁଲ୍ ଅଛି । ମାତ୍ର ସେଠାରେ ଆମ ପିଲାମାନେ ପଢ଼ିପାରୁନାହାନ୍ତି । ଆମ ପିଲାଙ୍କ ଛିଣ୍ଡା ମଇଳା ଜାମା ପେଣ୍ଟ ଦେଖି, ଅନ୍ୟ ପିଲାମାନେ ହସୁଛନ୍ତି । ଏପରିକି ପଢ଼ାଉଥିବା ଶିକ୍ଷକ ଘୃଣା କରୁଛନ୍ତି । ବହି ସିଲଟ ପାଇଁ ଆମ ପାଖରେ ପଇସା ନାହିଁ ।

ଆମ ଭିତରୁ ଅନେକ ଚାହାନ୍ତି, ଆମ ପିଲାମାନେ ପାଖରେ ରହନ୍ତୁ । ଛୋଟ ମୋଟ କାମଦାମ କରି ଘର ପାଇଁ ଦି ପଇସା ରୋଜଗାର କରନ୍ତୁ । କିଛି ନ ହେଲେ ବି କୋଡ଼ ଛୁଆଟିକୁ ଧରିଲେ, ମା'ତ କାମଧନ୍ଦା କରିପାରିବ ।

ସ୍କୁଲ୍‌ମାନଙ୍କରେ ରଙ୍ଗ ରଙ୍ଗିଆ ସଫା ପୋଷାକ ପିନ୍ଧି ପିଲାମାନେ ଯେତେବେଳେ ଗୁଲୁରୁ ଗାଲର ହୋଇ ବୁଲୁଥାନ୍ତି, ଗୀତ ଗାଉଥାନ୍ତି, ଭାରି ଖୁସି ଲାଗେ । ମନେହୁଏ ସତେ ଯେପରି ସ୍ୱର୍ଗପୁରରୁ ସାନ ସାନ ଦେବଦୂତମାନେ ଆସି ମର୍ତ୍ତ୍ୟରେ ବୁଲୁଛନ୍ତି । ଏସବୁ ଦେଖି ନିଜ ପିଲାପିଲିଙ୍କ କଥା ଭାବଲା ବେଳେ ଛାତି ଭିତରଟା କଅଣ ହୋଇଯାଏ । ଆମେ ବି ଚାହୁଁ, ଆମ ପିଲାମାନେ ଏମିତି ଖୁସିରେ ପାଠ ପଢ଼ନ୍ତୁ, ସୁନ୍ଦର ଦିଶନ୍ତୁ । ମାତ୍ର ଏଇଟା ଆମ ପାଇଁ ଅସମ୍ଭବ ବୋଲି ମନେ ହୁଏ ।

କିନ୍ତୁ, ଅସଲ କଥା ହେଲା ଯେ, ଏଇଟା କଅଣ ଆମ ଦେଶ ପାଇଁ ଅସମ୍ଭବ କଥା !!

ସୋଭିଏତ ୟୁନିୟନ ବୋଲି ଗୋଟିଏ ଦେଶ ଥିଲା । ଦୁର୍ଭାଗ୍ୟର କଥା, ଏ ଦେଶଟି ଏବେ ଭାଗ ଭାଗ ହୋଇଗଲା । ଆଗ ଅପେକ୍ଷା ଗରିବ ହୋଇଗଲା । ସେଠାରେ ସମସ୍ତେ ଭଲ ରୋଜଗାର କରୁଥିଲେ । ଖାଇବା, ପିନ୍ଧିବା, ରହିବାର ଅଭାବ ନଥିଲା । ଦେଶର ଲୋକମାନଙ୍କ ପାଇଁ ଭବିଷ୍ୟତ ପୁରାପୂରି ସୁରକ୍ଷିତ ରହୁଥିଲା । ପିଲାମାନେ ଭାରି ସୁସ୍ଥ ସବଳ ହୋଇ ବଢୁଥିଲେ । କହିବାକୁ ଗଲେ, ଦେଶଟି ଥିଲା ପିଲାମାନଙ୍କ ପାଇଁ ସ୍ୱର୍ଗର ନନ୍ଦନକାନ । ସୋଭିଏତ୍ ୟୁନିୟନ୍ ପରି ଅନେକ ସମାଜବାଦୀ ଦେଶରେ ସାମାଜିକ ସ୍ଥିତି ଭାରି ଭଲ ଥିଲା । ଆଜି ଏଇ ଦେଶମାନଙ୍କରେ ସବୁ କିଛି ବଦଳିଯାଇଛି । ବର୍ତ୍ତମାନ ବେକାରୀ ବଢ଼ିଗଲାଣି । ନାନାପ୍ରକାର ଅଭାବ ଦେଖାଦେଲାଣି । ଏସବୁ ସତ୍ତ୍ୱେ ଏ ଦେଶମାନଙ୍କଠାରୁ ଆମକୁ ଅନେକ କିଛି ଶିଖିବାର ଅଛି । ସେମାନେ ଦାରିଦ୍ର୍ୟ ହଟାଇ ପାରିଥିଲେ, ସମସ୍ତଙ୍କ ପାଇଁ ମୌଳିକ ସୁଖ ସୁବିଧା ଯୋଗାଇ ପାରିଥିଲେ । ଆମେ ଇଚ୍ଛା କଲେ, ଏ ଦେଶମାନଙ୍କର ଅନୁଭୂତିରୁ ଶିଖି ପାରିବା । ଆମେ ଦେଶରେ ଥିବା ଦାରିଦ୍ର୍ୟର କାରଣଗୁଡ଼ିକୁ ନିରାକରଣ କରିପାରିବା । ଆମ ପିଲାଙ୍କ ପାଇଁ ଆମ ଦେଶଟିକୁ ସ୍ୱର୍ଗରେ ପରିଣତ କରିପାରିବା । ଏଥିପାଇଁ ଆମକୁ ଶପଥ ନେବାକୁ ପଡ଼ିବ । ବହୁତ ପରିଶ୍ରମ ତଥା ଉଦ୍ୟମ କରିବାକୁ ପଡ଼ିବ ।



ସବୁଆଡ଼କୁ ଲକ୍ଷ୍ୟ କଲାବେଳେ ବଡ଼ ନିରାଶ ଲାଗୁଛି । ଆମମାନଙ୍କ ଭିତରୁ ଅନେକଙ୍କ ଘରେ ଚୁଲି ଜଳୁ ନଥିଲାବେଳେ ଅନେକଙ୍କର ଘର ଘିଅ ଦହିରେ ଭାସୁଛି । ଯେଉଁ ରାମରାଜ୍ୟର ସ୍ୱପ୍ନ ଦେଖି ଆମ ବାପା ଅଜା ଇଂରେଜ ବିରୋଧରେ ସଂଗ୍ରାମ କରିଥିଲେ ସେ ରାମରାଜ୍ୟ ବହୁ ଦୂରରେ ରହିଯାଇଛି । ଜମିହୀନ ଲୋକ ଜମି ଥିବା ଲୋକ ପାଖରେ

କାମ କରି ପେଟ ପୋଷୁଛି । ତା ଝାଳବୁହା ପରିଶ୍ରମରେ ଫସଲ ଅମଳ ହେଉଛି । କିନ୍ତୁ ସେ ଫସଲକୁ ଭୋଗ କରିପାରୁନି । ଜମି ମାଲିକ ଫସଲକୁ ଜମା କରି ରଖୁଛି, ଖାଇ ମଉଜ କରୁଛି, ବଳକା ତକ ବିକ୍ରି କରି ଧନ ସଞ୍ଚୟ କରୁଛି । ପରିଶ୍ରମ କରିଥିବା ଲୋକର ପରିବାର ଅଭାବରେ ଚଳୁଛି । ପାଟି ଖୋଲି ପଚାରିବାକୁ ସାହସ ହେଉନି । ଜମି ବଣ୍ଟନ ବିଷୟରେ ନୂଆ ସଂସ୍କାର କଥା କୁହାଯାଉଥିଲା । ମାତ୍ର ଏ ପର୍ଯ୍ୟନ୍ତ ସେ ସବୁ ବିଷୟରେ କିଛି ନିଷ୍ପତ୍ତି ହୋଇପାରିଲା ନାହିଁ । ଗରିବ ଲୋକମାନଙ୍କର ଉପକାର ପାଇଁ ସରକାର କେତେ ରକମର କାର୍ଯ୍ୟକ୍ରମ ଆରମ୍ଭ କଲେ । କିନ୍ତୁ ଦେଖିଲା ବେଳକୁ ତେଲିଆ ମୁଣ୍ଡରେ ତେଲ । ଯିଏ ମାରିନେବାର କଥା ମାରିନେଲା । ଏ କଥା ସରକାରଙ୍କ ସମେତ ସମସ୍ତେ ଜାଣନ୍ତି । ମାତ୍ର କିଛି ହେଉନି । ସରକାର ସର୍ବନିମ୍ନ ମୁଜୁରୀ ବିଲ୍ ମଞ୍ଜୁର କରି ବହୁତ ଭଲ କାମଟିଏ କଲେ । କିନ୍ତୁ ସେ ସବୁ ବାସ୍ତବ କ୍ଷେତ୍ରରେ କାର୍ଯ୍ୟକାରୀ ହୋଇପାରିନି । ସାହସ କରି ଏ ବିଷୟ ପଚାରିଲେ, ବେଖାତିର କରି କଥାଟାକୁ ଉଡ଼ାଇ ଦିଆଯାଉଛି । ବେଳେବେଳେ ଆମକୁ ସଂଗଠିତ ହୋଇ ଲଢ଼ିବାକୁ କୁହାଯାଉଛି । ସେପରି କରିବାକୁ ଆରମ୍ଭ କଲେ ଆମ ପଛରେ ଗୁଣ୍ଡା ଲାଗିଯାଉଛନ୍ତି । ଆମକୁ ପିଟି ପିଟି ସାବାଡ଼ କରିଦିଆଯିବ ବୋଲି ଧମକ ଦିଆଯାଉଛି । ଘରବାଡ଼ି ପୋଡ଼ି ଜଳାଇ ଦିଆଯିବ ବୋଲି କୁହାଯାଉଛି । ବେଳେବେଳେ ଅନେକ ଜାଗାରେ ଏଭଳି ଅଘଟଣ ସବୁ ଘଟୁଛି ।

ଗୋବରା ସେଦିନ ତା' ହକ୍ ବିଷୟରେ ପଚାରିବାକୁ ଗଲା । ରାମହରି ବାବୁ ବଡ଼ ଶରଧାରେ ଗୋବରାକୁ କହିଲେ, " ଗୋବରା, ତୋର ଚିନ୍ତା କଅଣ ? ତୁ ତ ଗିରିଜନ ହରିଜନ ସଂପ୍ରଦାୟର ଲୋକ ।



ତୁମ ପାଇଁ ସରକାରଙ୍କର କେତେ କେତେ ଯୋଜନା ରହିଛି । ସବୁଠି ଟଙ୍କା ପଇସା ଭର୍ତ୍ତି ।" ଗୋବରା ଖୁସି ହୋଇ ରାମହରିବାବୁଙ୍କ କଥା ଅନୁସାରେ କାଗଜପତ୍ର କାମ କଲା । ହେଲେ ତାକୁ କିଛି ମିଳିଲା ନାହିଁ । ମଝିରେ ଆଉ ଜଣେ ମାରିନେଲେ । ଗୋବରା କାକୁତି ମିନତୀ ହୋଇ ଅନେକ ନେହୁରା ହେଲା । ଫଳ କିଛି ହେଲା ନାହିଁ । ଯେତେବେଳେ ନିଜ ଅଧିକାର ବିଷୟରେ ଗୋବରା ଦାବି କଲା, ସେତେବେଳେ ଫଳ ଓଲଟା ହେଲା । ଫାନ୍ଦ ଫାରସାଦି କରି ଗୋବରା ଓ ତା ଭାଇ ଭିତରେ ଗଣ୍ଡଗୋଳ ଲଗାଇ ଦିଆଗଲା । ପରେ ପରେ ସବର୍ଣ୍ଣ ଓ ହରିଜନଙ୍କ ଭିତରେ ଗଣ୍ଡଗୋଳର ନିଆଁ ଜଳିଲା । ଏମିତି ଦେଶସାରା, ନାନା ରକମର ବାଜେ ନାଟ ତାମସା ଲାଗିଛି । ଭାଇ ଭାଇ ଭିତରେ ଯୁଦ୍ଧ ଚାଲିଛି । ଜାତି, ଧର୍ମ ନାଁରେ ବାଦ ବିବାଦ ସୃଷ୍ଟି

ହେଉଛି । ଭାଷା ସଂସ୍କୃତିକୁ ନେଇ କଳିଗୋଳ ଲାଗିଛି । ଭଗବାନଙ୍କୁ ଭୁଲି ପବିତ୍ର ମନ୍ଦିର, ମସ୍‌ଜିଦ୍, ଚର୍ଚ୍ଚ ଓ ଗୁରୁଦ୍ୱାର ନାଁରେ ଖଣ୍ଡଯୁଦ୍ଧ ସୃଷ୍ଟି କରାଯାଉଛି । ମାଟିର ପୁଅ ଭିଟାମାଟି ଛାଡ଼ି ଚାଲିଯାଉଛି । ପେଟ ପୋଷିବା ପାଇଁ ଆଉ କେଉଁଠି ଆଶ୍ରୟ ନେବାକୁ ବାଧ୍ୟ ହେଉଛି ।

ସଂବିଧାନରେ କୁହାଯାଇଛି, ସମସ୍ତେ ପାଠ ପଢ଼ିବେ । ମାତ୍ର ଏ ପର୍ଯ୍ୟନ୍ତ ଆମ ଭଳି କୋଟି କୋଟି ଲୋକ ପାଠ ପଢ଼ିନାହାନ୍ତି । ୧୪ ବର୍ଷ ପର୍ଯ୍ୟନ୍ତ, ସମସ୍ତ ପିଲା, ବାଧ୍ୟତାମୂଳକ ଭାବରେ ପାଠ ପଢ଼ିବେ ବୋଲି ସମ୍ବିଧାନରେ ଲେଖାଅଛି । କିନ୍ତୁ ଅନେକ ପ୍ରତିଶ୍ରୁତି ପରି ଏହା ମଧ୍ୟ ପାଣିର ଗାର ପରି ମନେ ହେଉଛି ।

ଆମ ପିଲାମାନଙ୍କ ପାଇଁ ସ୍କୁଲ୍ ନାହିଁ । ଗାଁକୁ ବିଜୁଳି ନାହିଁ କି ରାସ୍ତା ନାହିଁ । ତେବେ ଆମ ପାଇଁ କଅଣ କରାଯାଇଛି ? କିନ୍ତୁ ଯେଉଁମାନେ ଚାଲାକ ଚତୁର ସେମାନେ ସବୁକିଛିର ଭାଗୀଦାର । ଆମେ କଅଣ ଏ ଦେଶର ନାଗରିକ ନୋହୁଁ ? କଥା କହିଲାବେଳେ ଅନେକ ପଣ୍ଡିତ ସାଜି ବଡ଼ ବଡ଼ କଥା କହୁଛନ୍ତି । ସେମାନଙ୍କ କଥାରେ ବାଡ଼ ବତା ନାହିଁ । ସମସ୍ତେ କହିବାରେ ଲାଗିଛନ୍ତି ଆମେ ସମସ୍ତେ ଭାରତମାତାର ସନ୍ତାନ, ଆମେ ସମସ୍ତେ ଭାଇ ଭଉଣୀ, ସମସ୍ତେ ଆମେ ଏକ ।

ଆମ ଦୁଃଖ ପାଇଁ କାହା ଆଗରେ ଆପତ୍ତି କରିବା ? ସରକାରଙ୍କ ପାଖରେ ! ଭୋଟ ଦେଇ ଆମେ ସରକାର ଗଢ଼ିଛେ । କିନ୍ତୁ ପ୍ରକୃତରେ ଆମେ କଅଣ ଠିକ୍ ଭାବରେ ସରକାର ଗଢ଼ି ପାରୁଛେ ? ଏ ବିଷୟରେ ଟିକିଏ ଭଲ ଭାବରେ ଭାବି ଦେଖିବା ।



ଆମ ଦେଶର ଶାସନ ହେଉଛି ଗଣତନ୍ତ୍ର । ଅର୍ଥାତ୍ ଏହା ଜନସାଧାରଣଙ୍କ ଦ୍ୱାରା ତିଆରି ଶାସନ ବ୍ୟବସ୍ଥା ଏବଂ ଏ ଶାସନ ଜନସାଧାରଣଙ୍କର ହିତ ପାଇଁ ଉଦ୍ଦିଷ୍ଟ । ଏଥିପାଇଁ ଆମେ ଭୋଟ୍ ଦେଇ ନେତା ବାଛୁ । ନେତାମାନେ ମିଶି ସରକାର ଗଢ଼ନ୍ତି । କିନ୍ତୁ ଆମେ ଭୋଟ୍ ଦେବାଟା କେତେଦୂର ସାଧୁ ଉପାୟରେ ହେଉଛି, ସେ କଥା ଲକ୍ଷ୍ୟ କରିବା ଆବଶ୍ୟକ । ବିଭିନ୍ନ ରାଜନୈତିକ ଦଳ ନିଜ ନିଜ ବାନା ଉଡ଼ାଇ ଭୋଟ୍ ପ୍ରଚାର କରିବା ପାଇଁ ଆସନ୍ତି । ଆମକୁ ନାନା ଢ଼ଙ୍ଗରେ କଥା କହି ଭୁଲାଇ ଦିଅନ୍ତି । ପ୍ରତିଶ୍ରୁତି ପରେ ପ୍ରତିଶ୍ରୁତି ଅଜାଡ଼ି ହୋଇପଡ଼େ । ଭୋଟ୍ କିଣିବା ପାଇଁ ଆମ ଭିତରୁ ଅନେକଙ୍କୁ ଟଙ୍କା ପଇସା ଯାଚନ୍ତି । ଅନେକ ଜାଗାରେ ଭୋଟ୍ ପାଇବା ପାଇଁ ଗୁଣ୍ଡାମାନଙ୍କ

କାରବାର ଚାଲେ । କେଉଁଠି ଭୋଟ୍ ବାକ୍ସ ଚୋରି ହୋଇଯାଏ ତ ଆଉ କେଉଁଠି ଡ଼ର ଭୟ ଦେଖାଇ ଭୋଟ୍ ଆଦାୟ କରାଯାଏ । ଏପରି ବି ଦେଖାଯାଏ ଯେ ଆମେ ଭୋଟ୍ ଦେବାକୁ ଯିବା ପୂର୍ବରୁ ଆମ ନାଁ ରେ ଭୋଟ୍ ଦିଆହୋଇ ସାରିଥାଏ । ଏ ସବୁର ପ୍ରତିକାର ପାଇଁ କେବଳ ନିଜେ ସଚେତନ ହୋଇ ନିଜର ଦାୟିତ୍ୱ ସମ୍ପାଦନ କରିବାକୁ ହେବ । ଏଥିପାଇଁ ପୋଲିସ୍‌କୁ ଆପତ୍ତି କଲେ, ପୋଲିସ୍ କିଛି କରିପାରନ୍ତି ନାହିଁ । କାରଣ ପୋଲିସ୍ ହେଉଛି ସରକାରୀ ଚାକିରିଆ । ଚାକିରିଆର ସମସ୍ତଙ୍କୁ ଡ଼ର । ଗୁଣ୍ଡାଙ୍କୁ ଯେତିକି ଡ଼ର ନେତାଙ୍କୁ ସେତିକି ଡ଼ର ।

ଯେଉଁମାନେ ସରକାର ଗଢ଼ିବା ପାଇଁ ନେତା ଭାବରେ ଆମ ଆଗରେ ଛିଡ଼ା ହେଉଛନ୍ତି ସେମାନେ କେଉଁ ଶ୍ରେଣୀର ? ସେମାନଙ୍କ ଭିତରୁ ଅନେକ ଶୋଷକ ଗୋଷ୍ଠୀର । ଅନେକ ସର୍ବସାଧାରଣଙ୍କୁ ଶୋଷଣ କରୁଥିବା ବ୍ୟକ୍ତିମାନଙ୍କୁ ଭିତରେ ଭିତରେ ସମର୍ଥନ କରନ୍ତି । ଆମକୁ ନ୍ୟାୟ କେଉଁଠୁ ମିଳିବ ? ଗୁଣ୍ଡାମାନେ ନେତାମାନଙ୍କ ବାହୁ ଛାୟା ତଳେ ସୁରକ୍ଷିତ ହୋଇ ରହୁଛନ୍ତି । ନେତାମାନେ ଗୁଣ୍ଡାମାନଙ୍କ ଦ୍ୱାରା ନିଜ ନିଜ ସ୍ୱାର୍ଥ ସାଧନ କରାଇବାରେ ଅଭ୍ୟସ୍ତ । ସବୁଆଡ଼େ ଆଖି ବୁଲାଇ ଆଣିଲେ, ଖାଲି ଦେଖାଯାଉଛି, ଦୁର୍ନୀତି ଆଉ ଦୁର୍ନୀତି । କଳାବଜାରୀ, ସାଉକାର ନୀତି, ଚୋରି, ଡ଼କାୟତି, ଅତ୍ୟାଚାର ସବୁଆଡ଼େ ଛାଇ ହୋଇଯାଇଛି । ରାଜନୈତିକ ନେତାମାନଙ୍କ ପ୍ରତିଶ୍ରୁତି ବହୁତ । ମନେ ହୁଏ ସତେ ଯେପରି ନିର୍ବାଚନ ପରେ ସବୁ ଦୁଃଖ, ସମସ୍ୟା ଚାଲିଯିବ । ମାତ୍ର ଭୋଟ୍ ଦିଆ ସରିଗଲେ ସବୁ ପ୍ରତିଶ୍ରୁତି ମଉଳିଯାଏ । ଯେଉଁ କଥାକୁ ସେଇକଥା । ଭୋଟ୍ ପାଇ ନେତା ମସଗୁଲ୍ ହୁଅନ୍ତି । ଗଣତନ୍ତ୍ରର

ସରକାର, ଲୋକମାନଙ୍କର ଓ ଲୋକମାନଙ୍କ ପାଇଁ, ଏ କଥା ପୋଥି ବାଇଗଣ ହୋଇ ରହିଯାଏ । ସରକାର ବହୁତ ଶକ୍ତିଶାଳୀ ହୋଇପଡ଼ନ୍ତି । ତାଙ୍କ ହାତରେ ପୋଲିସ୍, ମିଲିଟାରୀ ବଳ, ବିଚାର ବିଭାଗ ସବୁକିଛି ରହିଯାଏ । ନିଜ ସ୍ୱାର୍ଥପାଇଁ ସରକାର ଦେଶର ସମ୍ବଳ ଖର୍ଚ୍ଚ କରନ୍ତି । ସରକାରୀ କର୍ମଚାରୀମାନଙ୍କୁ ଏଥିପାଇଁ ନିଯୁକ୍ତ କରାଯାଏ ।

ପ୍ରତିବର୍ଷ ଆମ ଦେଶକୁ ବଡ଼ଧରଣର ଦୁର୍ନୀତିମାନ ପଶିଆସୁଛି । ସ୍କାମ୍ ପରେ ସ୍କାମ୍ । ମାତ୍ର କେହି ଉପଯୁକ୍ତ ଦଣ୍ଡ ପାଉନାହାନ୍ତି । ହାତୀମାନେ ଗଳି ଯାଉଛନ୍ତି, ମାତ୍ର ପିମ୍ପୁଡ଼ି ବେଳକୁ ସମସ୍ତେ ମାଡ଼ି ବସୁଛନ୍ତି । ସାରା ସମାଜ ବର୍ତ୍ତମାନ ବିପଦ ସଙ୍କୁଳ ଅବସ୍ଥାରେ ଅଛି । କେତେବେଳେ କଅଣ ଘଟିବ, ତାହା କହି ହେବନି । ମୂଲ୍ୟବୋଧ ବୋଲି କିଛି ରହୁନାହିଁ । ସବୁଆଡ଼େ ବ୍ୟାପିଯାଇଛି, ଦୁର୍ନୀତି ଆଉ ଦୁର୍ନୀତି । ସାଧୁତା, ସଚ୍ଚୋଟତା କଥା କହିଲେ, ସମସ୍ତେ ଟାହି ଟାପରା କରୁଛନ୍ତି । ଜନସାଧାରଣଙ୍କର ସମ୍ପତ୍ତି, ଯିଏ ଯେପରି ପାରିଲା ନେଇଯିବାରେ ବ୍ୟସ୍ତ । ଅନେକ ଜାଗାରେ, ‘‘ସରକାରକା ମାଲ୍ ଦରିଆମେ ଡ଼ାଲ୍’’ କହି ସରକାରୀ ଧନ ବୁହା ଚାଲିଛି ।

ଯେଉଁ ନେତାମାନେ ସରକାରରେ ନାହାନ୍ତି, ସେମାନେ ସରକାରରେ ଥିବା ନେତାମାନଙ୍କୁ ଭାରି ଈର୍ଷା କରନ୍ତି । କଳେବଳେ କୌଶଳେ ସରକାର ଗଢ଼ିବାକୁ ଚାହାନ୍ତି । ବେଳେବେଳେ ସେମାନେ ଲୋକମାନଙ୍କୁ ଗୁଣ୍ଡାଗିରି, ଚୋରି, ଡ଼କାୟତି, ଦଙ୍ଗାହଙ୍ଗାମା କରି ଗଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟି କରିବାକୁ ଉସୁକାନ୍ତି ।



ଆମ ଭିତରୁ ଅନେକ ଏସବୁ ସହି ପାରନ୍ତି ନାହିଁ । ବ୍ୟକ୍ତିଗତ ଭାବରେ ସେମାନେ ଆତଙ୍କବାଦୀ ସାଜନ୍ତି । ପ୍ରକୃତରେ ଯେଉଁମାନେ ସଚ୍ଚୋଟ, ନିଷ୍ପାପର ଏବଂ ଯେଉଁମାନଙ୍କର ଦରିଦ୍ର ତଥା ତଳେ ପଡ଼ିଥିବା ଲୋକଙ୍କ ପ୍ରତି ଦରଦ ଥାଏ, ସେହିମାନଙ୍କ ଭିତରୁ ଅନେକ ହିଁ ନିଜ

ଜୀବନ ଦେବାକୁ ପ୍ରସ୍ତୁତ ହୋଇ ଆତଙ୍କବାଦୀ ସାଜନ୍ତି । କିନ୍ତୁ ଉଦ୍ଦେଶ୍ୟ ଯେତେ ମହତ୍ ହେଲେ ବି ମାର୍ଗ ଯଦି ଖରାପ ହୁଏ, ଶେଷରେ ବିଫଳତା ମିଳେ । ସ୍ୱାର୍ଥପର ଲୋକେ, ଗୁଣ୍ଡା ଆଉ ଅପରାଧୀମାନେ ଏ ସୁଯୋଗ ନେଇ ନିଜ ଉଦ୍ଦେଶ୍ୟ ପୂରଣ କରନ୍ତି ।

ସନ୍ଥ ପାଳି ଦୁଷ୍ଟ ନିବାରଣ କରିବା ପାଇଁ କୌଣସି ଭଗବାନ ଆଉ ଅବତାର ନେଇ ଆସିବେ ନାହିଁ । ଏଥିପାଇଁ ଅପେକ୍ଷା କରିବା ବୃଥା । କେବଳ ଯଦି ଆମର ନିଜ ଉପରେ ଭରସା ଥାଏ, ତେବେ ଆମେ ନିଜକୁ ନିଜେ ରକ୍ଷା କରିପାରିବା । କିନ୍ତୁ ନିଜ ଉପରେ ଆମର ବିଶ୍ୱାସ କମିଯାଉଛି । ଏହା ଆଦୌ ଭଲ ଲକ୍ଷଣ ନୁହେଁ । ନିଜ ଉପରେ ବିଶ୍ୱାସ ନଥିଲେ କିଏ ଆମକୁ ରକ୍ଷା କରିବ ? ଆମେ କଅଣ କରୁଛୁ, ସେ ସବୁକୁ ଭଲ ଭାବରେ ଲକ୍ଷ୍ୟ କରିବା ।

ଆମେ ହଳ କରୁଛେ, ମଞ୍ଜି ବୁଣୁଛେ, ଜମିରେ ପାଣି ମଡ଼ାଉଛେ, ଫସଲ ଅମଳ କରୁଛେ ଏବଂ ହାଟକୁ ନେଇ ବିକ୍ରି କରୁଛେ । ଗୋଟିପଥର ଭାଙ୍ଗି ଆମେ ରାସ୍ତା ତିଆରି କରୁଛେ । ଆମେ କେନାଲ୍ ଖୋଳୁଛେ, ବ୍ରିଜ୍ ତିଆରି କରୁଛେ । ଆମେ କମାର କାମ କରୁଛେ, ବଢ଼େଇ କାମ କରୁଛେ, ଗଛହାଣି ଜାଳକାଠ ବନାଉଛେ । ଅନ୍ୟମାନଙ୍କର ନାଳ ନର୍ଦ୍ଦମା ସଫା କରୁଛେ । କହିବାକୁ ଗଲେ ଆମେ ହିଁ ସବୁ କାମ କରୁଛେ, ପୁଣି ସବୁ କାମ ଅଳ୍ପ କେତେକଙ୍କ ସୁଖ ପାଇଁ କରୁଛେ ।

ଟିକିଏ ଭାବିବା । ଯଦି କିମିଆ କରି ଆମକୁ କିଏ ପଥର କରିଦିଅନ୍ତା, ତେବେ କଣ ହୁଅନ୍ତା ! ଆମେ ଯେଉଁ କାମଦାମ କରୁଥିଲେ ସେ ସବୁ

କିଏ କରନ୍ତା ? ଯେଉଁମାନଙ୍କ ପାଇଁ ଆମେ ଏସବୁ କରୁଥିଲେ ସେମାନଙ୍କର କଅଣ ହୁଅନ୍ତା ?

ପ୍ରକୃତରେ ଦେଖିଲେ, ଆମେ ନଥିଲେ ସେମାନେ ତିଳେମାତ୍ର ଚଳି ପାରନ୍ତେ ନାହିଁ ।

କିନ୍ତୁ ସେମାନେ ଯଦି ହଠାତ୍ ପଥର ପାଲଟି ଯାଆନ୍ତେ, ତେବେ ଆମର କଣ ହୁଅନ୍ତା ? ବୋଧ ହୁଏ ଆମେ ଆହୁରି ସୁଖରେ ରହନ୍ତେ । ଆମକୁ ତ ସବୁ କାମ ଜଣା ! ଆମର ଅବା କଣ ଅସୁବିଧା ହୁଅନ୍ତା ।

ଏଇଟା ଏକ ନିରାଟ ସତକଥା ଯେ, ଆମ ଭିତରୁ ଅଧିକାଂଶ ପଢ଼ିଲେଖି ଜାଣିନାହାନ୍ତି । ବିଜ୍ଞାନ, ଇଞ୍ଜିନିୟରିଂ ପାଠ, ସଂସ୍କୃତ ଅବା ଇଂରାଜୀ ଉପରେ ଆମର ଧାରଣା ନାହିଁ । କିନ୍ତୁ ଏସବୁ ଆମକୁ ବଳେଇଯିବ ନାହିଁ । ଆମେ ପାହାଚ ପରେ ପାହାଚ ଉଠି ସବୁ ଶିଖି ଯାଇପାରିବା

ଯଦି ସବୁ ଜମି ସମସ୍ତଙ୍କ ଭିତରେ ବାଣ୍ଟି ଦିଆଯାଆନ୍ତା, ତେବେ କେମିତି ହୁଅନ୍ତା ? ଆମେ ଫସଲ ଫଳେଇ ଖାଇବା ଗଣ୍ଡାକ ପାଇଯାଆନ୍ତେ, ଆମ ପାଇଁ ଲୁଗା ବୁଣି ପାରନ୍ତେ, ରହିବାପାଇଁ ଘର ତିଆରି କରିପାରନ୍ତେ । ମାତ୍ର ଏସବୁ କରିବାକୁ କେହି ସାହସ କରୁନାହାନ୍ତି । ଜମିବାଡ଼ି ସବୁ ତାଙ୍କର ବୋଲି କହୁଛନ୍ତି । ଏସବୁ ପୁରା ମିଛ କଥା । ମାଟି କାହାର ? ମା ପେଟରୁ କେହି ମାଟିକୁ ଧରି ଆସି ନଥିଲେ କି ମଲାବେଳକୁ କେହି ମାଟି ନେଇ ଯାଇ ପାରିବେନି । ମାଟି, ପାଣି, ପବନ, ଗଛଲତା, ଏସବୁ ମାଟିମାଆର ସମ୍ପତ୍ତି । ଏଥିରେ ସମସ୍ତଙ୍କର ସମାନ ଅଧିକାର ଅଛି ।



କହିଲାବେଳେ ଏସବୁ ଭାରି ଭଲ ଶୁଭୁଛି, ମାତ୍ର ବାସ୍ତବ କ୍ଷେତ୍ରରେ ଏସବୁ ହେବ କେମିତି ? କେତେ କେତେ ଚେଷ୍ଟା ଆଗରୁ କରାଯାଇଛି । ମାଡ଼, ଗାଳି, ଭର୍ତ୍ସନା ଖାଇ ସବୁ ଆଶା ଆଉ ସ୍ୱପ୍ନ ଫସର ଫାଟିଯାଇଛି । ଏ ସବୁ ସତ, କିନ୍ତୁ ଆମକୁ ନିରାଶ ନ ହୋଇ ବାରମ୍ବାର ଚେଷ୍ଟା କରିବାକୁ ପଡ଼ିବ । ଯୁଦ୍ଧ କଲାବେଳେ ଅସ୍ତ୍ରଶସ୍ତ୍ର ବାରମ୍ବାର ସଜାଡ଼ିବାକୁ ହେବ ଏବଂ ଉନ୍ନତ ଧରଣର ଅସ୍ତ୍ରଶସ୍ତ୍ର ବ୍ୟବହାର କରିବାକୁ ପଡ଼ିବ । ଶତ୍ରୁ ପକ୍ଷର ଦୁର୍ଗରେ ଥିବା ଦୁର୍ବଳତାଗୁଡ଼ିକୁ ଲକ୍ଷ୍ୟ କରିବାକୁ ପଡ଼ିବ ।

ଆମ ଭିତରୁ ଅନେକ ଏବେ ପାଠ ପଢ଼ି ଲେଖି ଶିଖିଲେଣି । ଏହା ଗୋଟିଏ ଛୋଟିଆ କଥା ନୁହେଁ । ଏହା ଆମମାନଙ୍କ ଭିତରେ ଗୋଟିଏ ରକମର ବିଶ୍ୱାସ ସୃଷ୍ଟି କରୁଛି । ଏଭଳି ବିଶ୍ୱାସ ଆଗରୁ ଆମ ପାଖରେ ନଥିଲା । କିନ୍ତୁ ଅଧାପନ୍ତରିଆ କରି ପଢ଼ିଲେଖି ଶିଖିଲେ କିଛି ବି ଲାଭ ହେବନି । ଆମେ ଯେପରି ହଳ କରୁଛେ, ଫସଲ କାଟୁଛେ, ପହଁରୁଛେ, ଲୁଗା ବୁଣୁଛେ, ସେହିପରି ପାଠପଢ଼ା ଆମର ଅତି ସ୍ୱାଭାବିକ ହୋଇଯିବା ଆବଶ୍ୟକ । ଖାଲି ନାଁ ଦସ୍ତଖତ କରିଦେଲେ କିଛି ବି ଲାଭ ହେବନି । ଆମକୁ ବହୁତ କିଛି ଜାଣିବାକୁ ହେବ, ବହୁତ କିଛି ଶିଖିବାକୁ ହେବ । ପଢ଼ିଲେଖି ଜାଣିବା ଅର୍ଥ ବିଶ୍ୱକୁ ଜାଣିବା ସଙ୍ଗେ ସମାନ । ଯେଉଁମାନେ ଆମକୁ ଶୋଷଣ କରୁଛନ୍ତି, ସେମାନଙ୍କର ବୁଦ୍ଧି ଅଛି, ସେମାନେ ପାଠ ଶାଠ ପଢ଼ି ଚାଲାକ ହୋଇଛନ୍ତି । ଆମକୁ ପାଠ ପଢ଼ି ଜ୍ଞାନକୁ ଅକ୍ତିଆର କରିବାକୁ ପଡ଼ିବ । ପଢ଼ି ଲେଖି ପାରିବା ଏ ଦିଗରେ ପ୍ରଥମ ପଦକ୍ଷେପ । କିନ୍ତୁ ଏତିକିରେ ଅଟକି ଗଲେ ଚଳିବ ନାହିଁ । ଆମକୁ ବହୁତ ଲମ୍ବା ବାଟ ଚାଲିବାକୁ ହେବ, ଅନେକ ପାହାଚ ଚଢ଼ିବାକୁ ପଡ଼ିବ । ଏପରିକି ପାଠ ପଢ଼ିବା ଦ୍ୱାରା ଆମେ ଯେଉଁ ଛୋଟିଆ ଛୋଟିଆ କଥା ଜାଣୁଛେ ସେସବୁ ନିଶ୍ଚିତ ଭାବରେ ଆମ ଭିତରେ ଅନେକ ସ୍ୱାଧୀନ ମନୋଭାବ ଆଣିଦେଇଛି । ମା ଭଉଣୀମାନେ ପାଠ ପଢ଼ି ନିଜ ବିଷୟରେ ସଚେତନ ହେଉଛନ୍ତି । ମଦ ନିଶାର ଅପକାରିତା ବିଷୟରେ ବୁଝି ମରଦମାନଙ୍କ ମଦ ନିଶା ଛଡ଼ାଉଛନ୍ତି । ମଦ ବିରୋଧୀ ଆନ୍ଦୋଳନମାନ ମୁଣ୍ଡ ଟେକୁଛି । ମହିଳାମାନେ ସଂଗଠିତ ହୋଇ ବିକ୍ରି ବନ୍ଦ କରୁଛନ୍ତି । ଅନେକ ଉଦାହରଣ ଅଛି ଯେଉଁଠି ସରକାର ବାଧ୍ୟ ହୋଇ ମଦ ବିକ୍ରି ବନ୍ଦ କରୁଛନ୍ତି ।

ମହିଳାମାନେ ସାଇକେଲ୍ ଶିଖିଲେଣି । ବ୍ୟବସାୟରେ ନିଜେ ମାଲିକ ହେଲେଣି । ବ୍ୟାଙ୍କ କାରବାର ଓ ବ୍ୟବସାୟ ଆଦିରେ ପାରଙ୍ଗମ ହେଲେଣି । ସବୁ କାମକୁ ଡ଼ରିମରି କରିବାକୁ ସେମାନେ ପସନ୍ଦ କରୁନାହାନ୍ତି ।

ବର୍ତ୍ତମାନ ଅବିଶ୍ୱାସ ବା ସନ୍ଦେହ କରିବାର କୌଣସି କାରଣ ନାହିଁ । ଆମ ଦ୍ୱାରା ସବୁକିଛି ହୋଇପାରିବ । କିନ୍ତୁ ଏଥିପାଇଁ ଆମକୁ ସଂଗ୍ରାମ କରିବାକୁ ପଡ଼ିବ । ପାଦେ ପାଦେ କରି ଆଗେଇବାକୁ ହେବ । ଏକୁଟିଆ ବା ଛୋଟିଆ ଦଳରେ ଗଲେ ଆମ ବିଫଳ ହେବା । ସମସ୍ତଙ୍କୁ ମିଳିମିଶି ଯିବାକୁ ହେବ ।

ଜାତିଧର୍ମ ନିର୍ବିଶେଷରେ ଆମେ ସମସ୍ତେ ମଣିଷ । ଆମ ସମସ୍ତଙ୍କର ଗୋଟିଏ ଗୋଟିଏ ପେଟ ଅଛି ଆଉ ଦି, ଦିଟା ହାତ ଅଛି । ଆମେ ସମସ୍ତେ ଭୋକ ଉପାସରେ ରହୁଛେ । ଦାରିଦ୍ର୍ୟର ଯନ୍ତ୍ରଣା ଭୋଗ କରୁଛେ । ସମସ୍ତେ ଆମେ ମଇଳା ପାଣି ପିଉଛେ । ଖରାପ ପବନ ଆମ ପ୍ରଶ୍ୱାସରେ ଗ୍ରହଣ କରୁଛେ । ଆମ ଅଜାଣତରେ ଆମ କାମ ଭିତରେ ନାନାପ୍ରକାର ଚକ୍ରାନ୍ତ କରାଯାଉଛି । ଫଳରେ ଆମେ ନିଜ ନିଜ ଭିତରେ ମାଡ଼ପିଟ୍ ହେଉଛେ ଓ ପ୍ରକୃତ ଶତ୍ରୁକୁ ଭୁଲିଯାଉଛେ । ଆମ ଭିତରେ ଉଚ୍ଚ ନୀଚ ଜାତିର ଭେଦଭାବ ସୃଷ୍ଟି କରଯାଉଛି । ମନ୍ଦିର, ମସଜିଦ୍ ଆଉ ଚର୍ଚ୍ଚ ଭିତରେ ଠାକୁର ଅଲଗା ଅଲଗା ବୋଲି ବୁଝାଇ ଦିଆଯାଉଛି । ଆସ ଆମେ ସମସ୍ତେ ପ୍ରକୃତ ସତ୍ୟଟିକୁ ବୁଝିବା ଓ ସମସ୍ତଙ୍କୁ ବୁଝାଇଦେବା । ସବୁ ପ୍ରକାର ସୁଯୋଗର ସଦୁପଯୋଗ କରିବା । ସୁବର୍ଣ୍ଣ ସୁଯୋଗଟିଏ ଆସିବ ବୋଲି ଅପେକ୍ଷା କରି ବସିଯିବାନି ।

ଆଗେ ଆମର ପଞ୍ଚାୟତ ଥିଲା । କିନ୍ତୁ ଏବର ପଞ୍ଚାୟତ ଆଗଠାରୁ ଅଲଗା । ପ୍ରଥମ କଥା ହେଲା ନିର୍ବାଚନ ମାଧମରେ ଏବେ ପଞ୍ଚାୟତ ଗଢ଼ାଯାଇଛି । ଦ୍ୱିତୀୟରେ ଆଗେ, ସରପଞ୍ଚ ହୁଅନ୍ତୁ ବା ନହୁଅନ୍ତୁ ଜମିଦାର ଓ ପ୍ରଭାବଶାଳୀ ବ୍ୟକ୍ତିମାନେ ଥିଲେ ପଞ୍ଚାୟତ ଶାସନର ହର୍ତ୍ତା କର୍ତ୍ତା ବିଧାତା । ସେମାନଙ୍କ ଆଗରେ ପଞ୍ଚାୟତମାନେ ଅତି ଦୁର୍ବଳ ହୋଇ ରହୁଥିଲେ । ବର୍ତ୍ତମାନ କିନ୍ତୁ କଥାଟା ଅଲଗା । ଏବେ ପଞ୍ଚାୟତକୁ ବହୁତ ଶକ୍ତି ଆଉ ବହୁତ ସମ୍ବଳ ଦିଆଯାଇଛି । ଏକଥା ସତ୍ୟ ଯେ ପ୍ରଭାବଶାଳୀ ବ୍ୟକ୍ତି ଓ ଉଚ୍ଚ ଜାତିର ଲୋକାମାନେ ବେଳେବେଳେ କୌଶଳ କରି ଭୋଟରେ ଜିତି ପଞ୍ଚାୟତ ଶାସନକୁ ଅକ୍ତିଆର କରିବାକୁ ଚେଷ୍ଟା କରୁଛନ୍ତି । ପଞ୍ଚାୟତ ପାଇଁ ଅନେକ କିଛି କରିଦେବେ ବୋଲି ମିଥ୍ୟା ପ୍ରତିଶ୍ରୁତି ଦେଇ ସାଧାରଣ ଲୋକଙ୍କୁ କବ୍ଜା କରିନେଉଛନ୍ତି ।

ମନେରଖିବାକୁ ହେବ ଯେ ବର୍ତ୍ତମାନ ଆମପାଇଁ ସୁବର୍ଣ୍ଣ ସୁଯୋଗ ଆସିଛି । ଅନ୍ୟମାନଙ୍କ ପାଲରେ ପଡ଼ି ବାଟବଣା ହେବା ନାହିଁ କି ମିଥ୍ୟା ପ୍ରତିଶ୍ରୁତିରେ ଢ଼ଳିଯିବା ନାହିଁ । ସଚ୍ଚୋଟ ଦରଦୀ ବ୍ୟକ୍ତିଙ୍କୁ ଆମେ ଭୋଟ ଦେଇ ଜିତାଇବା । ବର୍ତ୍ତମାନ ଆମେ ଯେଉଁମାନଙ୍କୁ ଆମର ସରପଞ୍ଚ ବା ପଞ୍ଚାୟତ ସମିତି ସଭ୍ୟ ଭାବରେ ବାଛିଛନ୍ତି, ସେମାନଙ୍କୁ ଆମ ସମସ୍ୟା ଜଣାଇବା । ଆମ ଅଧିକାର ବିଷୟରେ କହିବା । ସେମାନଙ୍କ ଭିତରେ ଅନେକ ଆମମାନଙ୍କ କଥା ଠିକ୍ ଭାବରେ ବୁଝିପାରିବେ ଓ ଆମ ସମସ୍ୟା ସମାଧାନ କରିବାକୁ ଆଗେଇ ଆସିବେ । ଆମ ପଞ୍ଚାୟତ ବ୍ୟବସ୍ଥାରେ ଗୋଟିଏ ବଡ଼ କଥା କରାଯାଉଛି । ଆଗରୁ ମହିଳାମାନେ ଶାସନ କାମରେ ଭାଗନେବାକୁ ଆଗେଇ ଆସୁନଥିଲେ ବା ସେମାନଙ୍କୁ



ସୁଯୋଗ ଦିଆଯାଉନଥିଲା । ବର୍ତ୍ତମାନ କିନ୍ତୁ ଅନେକ ଭଉଣୀ ସରପଞ୍ଚ, ପଞ୍ଚାୟତ ସମିତି ସଭ୍ୟା, ପଞ୍ଚାୟତ ସମିତି ଚେୟାରମ୍ୟାନ୍ ଭାବରେ ନିର୍ବାଚିତ ହେଉଛନ୍ତି । ଏଇଟା କିଛି କମ୍ କଥା ନୁହେଁ । ନିର୍ବାଚିତ ମା ଭଉଣୀମାନେ ଯଦି ଠିକ୍ ଭାବରେ ସବୁକଥା ବୁଝିପାରିବେ, ତେବେ

ଅନେକ କଥା ସୁଧୁରିଯିବ । ଆମ ମା ଭଉଣୀମାନଙ୍କର ଅସୁବିଧା ଓ ସମସ୍ୟା କଥା ସେମାନେ ସରକାରଙ୍କୁ ସିଧାସଳଖ ଜଣାଇ ନୂଆ ନୂଆ ଯୋଜନା କରିପାରିବେ । ଏ ସୁଯୋଗର ଉପଯୁକ୍ତ ବିନିଯୋଗ କରି ନ ପାରିଲେ, ଆମେ ସବୁଠାରେ ହତଭାଗା ହୋଇ ରହିବା ।

ଯୁଗ ଅନେକ ଆଗେଇଲାଣି । କିନ୍ତୁ ଆମେ ପଛରେ ପଡ଼ିରହିଛୁ । କିଛି ଜାଣିବାକୁ ଆମର ଇଚ୍ଛା ନାହିଁ । ଭୋଟ ଦେଲାବେଳେ ଆମେ ବୁଝିପାରୁନୁ ଭୋଟ୍ କାହିଁକି ଦେବା । ଭୋଟ୍ ଦିନ ପାଖେଇ ଆସିଲା ବେଳକୁ, ଅସାଧୁ ନେତା ଟଙ୍କା ପଇସା, ଲୁଗାପଟା ଚାଉଳ ବାଣ୍ଟି ଦିଅନ୍ତି । ଆମେ ନ ବୁଝି ଏଇ ନେତାମାନଙ୍କ ଚିହ୍ନରେ ଭୋଟ୍ ମାରିଦେଉ । କିନ୍ତୁ ଆମେ ଜାଣିରଖିବା ଉଚିତ ଯେ ଏହିଭଳି ନେତାମାନେ ଆମର ପରମ ଶତ୍ରୁ । ଶପଥ କରିବା, ଭୋଟ ନାଁରେ କାହାଠାରୁ କିଛି ନେବା ନାହିଁ, ଯିଏ ଯାଚୁଛି, ତାକୁ ଭୋଟ୍ ଦେବା ନାହିଁ । ଆମ ମନକୁ ଦୃଢ଼ କରିବା । କାହାକୁ ଘୃଣା କରିବା ନାହିଁ । ଘୃଣାକଲେ, ଆମ ବୁଦ୍ଧି ବିବେକ ତଳେ ପଡ଼ିଯିବ । ଆମେ ଆମ ଶକ୍ତିକୁ ଠିକ୍ ଭାବରେ କାମରେ ଲଗାଇ ପାରିବା ନାହିଁ ।

ପଞ୍ଚାୟତରାଜ ହିଁ ପ୍ରକୃତ ଗଣତନ୍ତ୍ର । ଆମ ଦ୍ୱାରା ହିଁ ଏହି ଗଣତନ୍ତ୍ର ସମ୍ଭବ ହୋଇପାରିବ । ଆମ ପଞ୍ଚାୟତ ଶାସନକୁ ଠିକ୍ ଭାବରେ ଚଳାଇବା ପାଇଁ ଆମକୁ ସକ୍ରିୟ ଭାବରେ ଅଂଶ ଗ୍ରହଣ କରିବାକୁ ପଡ଼ିବ। ସେଥିପାଇଁ କେବଳ, ଭଲ ଚାଷୀ, ଭଲ ବୁଣାକାର ବା ଭଲ ବଢ଼େଇଟିଏ ହେଲେ ଚଳିବ ନାହିଁ । ସବୁଆଡ଼କୁ ଲକ୍ଷ୍ୟ ରଖି ଆମକୁ ବିଚାର କରିବାକୁ ପଡ଼ିବ । ସବୁଥିରେ ଭିତିରିଆ ଦିଗଗୁଡ଼ିକୁ ନଜର କରିବାକୁ

ହେବ । ଗୋଟିଏ କଥାକୁ ଆଉ ଗୋଟିକଠାରୁ ଅଲଗା କରି ଦେଖିଲେ ହେବ ନାହିଁ । ଗୋଟିଏ ସାଙ୍ଗରେ ଆଉ ଗୋଟିଏ ବନ୍ଧା । ପୁଣି ସବୁ ଜିନିଷ ସ୍ଥିର ହୋଇ ରହିନାହିଁ । ଗତିଶୀଳ ଏ ଦୁନିଆ । ଆଜି ଗତକାଲିଠାରୁ ଅଲଗା । ପୁଣି ଆସନ୍ତା କାଲି ଆଜିଠାରୁ ଅଲଗା ହେବ । ସବୁ ଜାଣି ବି ଆମେ ଏହି ସତ୍ୟଟିକୁ ଭୁଲିଯାଉ । ଏ ସବୁକୁ ମନେରଖି ଆମେ




ଆଗକୁ ଦେଖିବା ପାଇଁ ସକ୍ଷମ ହେବା ଆବଶ୍ୟକ । ଏ ସଂସାରରେ ଆପେ ଆପେ କିଛି ବି ହୁଏ ନାହିଁ । ସବୁ ଘଟଣା ପଛରେ କାରଣ ରହିଛି । ଶିଖିବା ପାଇଁ ଓ କାମ କରିବା ପାଇଁ ଇଚ୍ଛାଥିଲେ ଆମେ ଚାହୁଁଥିବା କଥା ସମ୍ଭବ ହୋଇପାରିବ ।

ପଞ୍ଚାୟତ ହାତକୁ ଅନେକ କ୍ଷମତା ଦିଆଯାଇଛି । ଅନେକ ସମ୍ବଳ ବି ଦିଆଯାଇଛି । ଆମେ ଆମ ଗାଁରେ ସ୍କୁଲ୍ କରିପାରିବା । ଆମ ପାଇଁ ସ୍ୱାସ୍ଥ୍ୟକେନ୍ଦ୍ର, ପାଠାଗାର, ଗାଁ ପାଇଁ ସବୁ ଦିନିଆ ରାସ୍ତା ଏମିତି ଅନେକ କିଛି କରିପାରିବା । ଜମି ମାଲିକ ଚାଷ କରୁନଥିଲେ, ଜମି ଛାଡ଼ି ଦେବେ ଓ ଯିଏ ଜମି ଚାଷ କରୁଛି, ଜମି ତା'ର ହେବ । ମା' ପେଟରୁ କେହି ଜମି ଧରି ଆସି ନଥିଲେ । ମାତ୍ର ଆମ ଝାଳବୁହା ପରିଶ୍ରମ ଫଳରେ ଜମିରେ ସୁନାର ଫସଲ ଫଳୁଛି । କିନ୍ତୁ ଏଇଟା ବଡ଼ ଅନ୍ୟାୟର କଥା ଯେ, ଯିଏ ଜମି ଚାଷ ନ କରୁଛି ସେ ଜମିର ମାଲିକ ବୋଲାଉଛି, ସେ ଫସଲକୁ ଉପଭୋଗ କରୁଛି । ସେ ଫସଲ ଜମା କରୁଛି, ମଉଜରେ ଖାଉଛି, ବଳକା ତକ ବିକୁଛି । ମାତ୍ର ପରିଶ୍ରମ କଲାଲୋକ ଭୋକ ଉପାସରେ ରହୁଛି । ସିଲିଂ ନିୟମକୁ ନ ମାନିବା ପାଇଁ ଜମି ମାଲିକମାନେ ପୁଅ, ଝିଅ, ନାତି, ନାତୁଣୀ ନାଁରେ ଜମି ପଟ୍ଟା କରିଛନ୍ତି । ଅନେକ ଜାଗାରେ ଦେଖାଯାଇଛି, ଜମି ସବୁ ଅବାନ୍ତର ନାଁ ଏପରିକି ପୋଷା କୁକୁର ନାଁରେ ବି ପଟ୍ଟା କରାଯାଉଛି । ଏ ସବୁ ଆଉ ଚଳିବ ନାହିଁ । ଆମକୁ ପାଟି ଖୋଲି ଏସବୁ ବନ୍ଦ ହେଉ ବୋଲି କହିବାକୁ ହେବ ।

ସବୁଥିପାଇଁ ଆମକୁ ରାଜ୍ୟ ସରକାର ଓ କେନ୍ଦ୍ର ସରକାରଙ୍କ ସାହାଯ୍ୟ ଦରକାର ହେବ । ଏଥିପାଇଁ ପଞ୍ଚାୟତ ଆମକୁ ସାହସ ଯୋଗାଇବ, ଯଦ୍ୱାରା ଆମେ ଆମ ସମସ୍ୟାଗୁଡ଼ିକୁ ସରକାରଙ୍କୁ ଜଣାଇପାରିବା । ରାଜ୍ୟ ସରକାର ପଞ୍ଚାୟତଗୁଡ଼ିକୁ ଆଉ ଅବହେଳା କରିପାରିବେ ନାହିଁ । ସଂବିଧାନ ଅନୁସାରେ ବର୍ତ୍ତମାନ ପଞ୍ଚାୟତଗୁଡ଼ିକ ଯଥେଷ୍ଟ କ୍ଷମତାଶାଳୀ ।

ଆଗରୁ ଆମ ଗାଁ ପାଇଁ ଦିଲ୍ଲୀରେ ଓ ଭୁବନେଶ୍ୱରରେ ଯୋଜନା ହେଉଥିଲା । ଏବେ କିନ୍ତୁ ଓଲଟା । ଆମ ଗାଁରେ କଅଣ ହେବ ତାହା ଆମ ପଞ୍ଚାୟତ ବୁଝିବ ।

ଏହା ହେଉଛି ନୂଆ ପଞ୍ଚାୟତିରାଜ ଓ ନଗରପାଳିକା ସଂଶୋଧନ ବିଲ୍‌ର ପ୍ରକୃତ ଅର୍ଥ ।

ଆମେ ଆମ ଜୀବନକୁ ବଦଳାଇ ପାରିବା । ଆମ ପାଇଁ ଆବଶ୍ୟକ ମୁତାବକ ଖାଇବା ପିନ୍ଧିବା, ରହିବା, ଶିକ୍ଷା ଦୀକ୍ଷା, ସ୍ୱାସ୍ଥ୍ୟ ସୁବିଧା ମିଳିପାରିବ, ଅବସର ବିନୋଦନ ପାଇଁ ଆଉ ବିଶ୍ରାମ ପାଇଁ ସମୟ ମିଳିପାରିବ । ଆଜି ଏସବୁ ଆମକୁ ସ୍ୱପ୍ନ ପରି ଲାଗିପାରେ । ମାତ୍ର ସ୍ୱପ୍ନ ହିଁ ନୂଆ ଚିନ୍ତା ଆଣିଦିଏ । ନୂଆ ଯୋଜନା ଆଉ ନୂଆ କାର୍ଯ୍ୟକ୍ରମ ଆରମ୍ଭ ହୁଏ । ଆସ ଆଜି ହିଁ ଆମେ ଭବିଷ୍ୟତ ପାଇଁ କାମ ଆରମ୍ଭ କରିଦେବା । କାଲିପାଇଁ ଅପେକ୍ଷା କରିବା ନାହିଁ ।

## *ସମୀକ୍ଷା ଓ ଆଲୋଚନା*

ଆମ ଦେଶ ପ୍ରତି ବିପଦ କଅଣ ?

ଆମେ ସମସ୍ତେ କଅଣ ଖୁସିରେ ଅଛୁ ?

ଆମର ସର୍ବନିମ୍ନ ଆବଶ୍ୟକତାଗୁଡ଼ିକୁ ଆମେ ପାଇପାରୁଛେ କି ?

ଆମ ପୁଅଝିଅଙ୍କ ଶିକ୍ଷା ଦୀକ୍ଷା ପାଇଁ କି କି ସୁବିଧା ସବୁ ଅଛି ?

ଆମର ଏ ଅବସ୍ଥା ସୁଧୁରିବ କିପରି ?

ଧର୍ମ ଜାତି ଆଉ ଦାରିଦ୍ର୍ୟ କଅଣ ମଣିଷକୁ ଚିହ୍ନିବାର ମାପକାଠି ?

ଆମେ ଆମ ଦେଶକୁ ଗଢ଼ି ପାରିବା କିପରି ?

ପଞ୍ଚାୟତିରାଜ ବ୍ୟବସ୍ଥା କଅଣ ?

ଆମେ ପଞ୍ଚାୟତିରାଜର ସଫଳତା ପାଇଁ କ'ଣ କରିପାରିବା ?

### *ଆମର ଆବଶ୍ୟକ*

ରୋଜଗାର ପାଇଁ କାମ ।

ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ ।

ସମସ୍ତଙ୍କ ପାଇଁ ଶିକ୍ଷା ।

ଗାଁ ଗାଁ ରେ ପାଠଗାର ।

ମହିଳା ଓ ପୁରୁଷଙ୍କର ସମାନ ଅଧିକାର,କ ସମାନ ସୁବିଧା ।

ଗାଁର ଯୋଜନା ଗାଁରେ ହେବ ।

